# ବିଚାର

ଡକ୍ଟର କୃତ୍ତିବାସ ନାୟକ



# ବିଚାର

ଜାତୀୟ ସଂହତି ଉପରେ ଆଧାରିତ

ମଞ୍ଚ ଉପଯୋଗୀ ଶିଶୁ ନାଟକ

ଡକ୍ଟର କୃତ୍ତିବାସ ନାୟକ

ଜାତୀୟ ପୁରସ୍କାର ପ୍ରାପ୍ତ ଲେଖକ



## ଅରୁଣ ତରୁଣ

ISBN NO. 81-901015-0-9

# ବିଚାର

ଶିଶୁ ନାଟକ

ଡକ୍ଟର କୃତ୍ତିବାସ ନାୟକ



# BICHAR :

CHILDREN'S STAGE PLAY

AUTHOR **DR. KRUTTIBAS NAYAK**

PUBLISHER: **ARUN - TARUN**
*(Regd. Society)*
Akashvani Road,
Raurkela - 42

DTP **GRAPHICS POINT**
RAURKELA

Printer **Jagannath Process**
1st Edition January, 2000

***Rs.10/- ( Ten ) only***

# ମୋ କଥା ପଦେ

ବିଭିନ୍ନ ଶିକ୍ଷାନୁଷ୍ଠାନର ପିଲାମାନେ କେବେ କେମିତି ନାଟକଟିଏ ପରିବେଷଣ କରିବାର ସୁଯୋଗ ପାଇଗଲେ, ତାଙ୍କ ଆଗରେ ବଡ଼ ସମସ୍ୟା ଭାବେ ଦେଖାଦିଏ– ନାଟକ ବହିର ଅଭାବ। ଏ' କଥାକୁ ଆପଣମାନେ ନିଶ୍ଚୟ ଅନୁଭବ କରିଥିବେ। ଶେଷରେ ବଡ଼ମାନଙ୍କ ଉଦ୍ଦେଶ୍ୟରେ ରଚିତ କୌଣସି ନାଟକ କିମ୍ବା ବହୁବାର ପରିବେଷିତ ଗୀତିନାଟ୍ୟକୁ ପୁନଃ ପରିବେଷଣ କରିବାକୁ ସ୍ଥିର ହୁଏ।

କେବଳ ଓଡ଼ିଶାରେ ନୁହେଁ, ସମଗ୍ର ଭାରତବର୍ଷ ତଥା ବିଶ୍ୱର ବିକଶିତ ରାଷ୍ଟ୍ରମାନଙ୍କରେ ମଧ୍ୟ ଏହି ସମସ୍ୟା ଆଜିଯାଏ ରହିଛି। ତା'ର କାରଣ ହେଲା– ପିଲାଂକ ପାଇଁ ସ୍ୱତନ୍ତ୍ର ସାହିତ୍ୟ ଓ ସ୍ୱତନ୍ତ୍ର ନାଟକ ରଚନା କରିବାକୁ ବିଶେଷ ଚେଷ୍ଟା କରା ଯାଇନାହିଁ। ଏଥିପାଇଁ ସେଭଳି କୌଣସି ଆଖିଦୃଶିଆ ପ୍ରତ୍ସୋହନ ମଧ୍ୟ ନାହିଁ। ତଥାପି ସାହିତ୍ୟ ବଞ୍ଚିଛି। ଭବିଷ୍ୟତ ପାଇଁ ମଧ୍ୟ ବଞ୍ଚି ରହିବ।

ଓଡ଼ିଆ ଶିଶୁସାହିତ୍ୟର ନାଟକ ବିଭାଗଟି ଅତ୍ୟନ୍ତ ଦୁର୍ବଳ। ଦୁର୍ବଳ ବିଭାଗକୁ ସବଳ କରିବା ଦିଗରେ, ଏହି ଶିଶୁ ନାଟକଟି ଗୁଣ୍ଡ୍ରିଚି ମୂଷାର ଭୂମିକା ଗ୍ରହଣ କରିବ ବୋଲି ମୋର ବିଶ୍ୱାସ।

ବିନୀତ ଲେଖକ

ସୂଚନା  ପିଲାମାନେ ପଶୁ–ପକ୍ଷୀମାନଙ୍କର ମୁଖା ପିନ୍ଧିବେ। ସଂଳାପ ଆରମ୍ଭରେ ସେହି ପଶୁ–ପକ୍ଷୀମାନଙ୍କ ପରି ଶବ୍ଦ କରିବେ।

ଏହି ଲେଖକଙ୍କର ଆଉ କେତୋଟି ଉପାଦେୟ
ଶିଶୁ ସାହିତ୍ୟ ପୁସ୍ତକ ଅବଶ୍ୟ ସଂଗ୍ରହଣୀୟ

- ଆସ ନାଟକ କରିବା – ଶିଶୁ ନାଟକ
- ବଣ ଭୋଜି – ଶିଶୁ ଉପନ୍ୟାସ
- ଫୁଲ ସବୁ ଫୁଟିଲେ – ଶିଶୁ ଗୀତିକଥା
- କିଏ ରେ ତୁହି କିଏ – ଶିଶୁ ଗୀତିକଥା
- ଚନ୍ଦନ–ଚକୁଳି – ଶିଶୁ ଉପନ୍ୟାସ
- ସର୍ବଜ୍ଞ ମାନବ – ଶିଶୁ ବିଜ୍ଞାନ
- ଜାଦୁକର – ଶିଶୁ ଉପନ୍ୟାସ
- ବଜ୍ର ପୁରୁଷ ବାଜପେୟୀ – ଶିଶୁ ଜୀବନୀ

ପ୍ରତ୍ୟେକର ମୂଲ୍ୟ ଦଶଟଙ୍କା । ରିହାତି ମୂଲ୍ୟରେ ଛାତ୍ର–ଛାତ୍ରୀମାନଙ୍କୁ ଯୋଗାଇ ଦିଆଯାଏ ।

ଯୋଗାଯୋଗ :
ପରିଚାଳକ, ଅରୁଣ–ତରୁଣ, ଆକାଶବାଣୀ ମାର୍ଗ,
ଜଗଦା, ରାଉରକେଲା – ୭୬୯ ୦୪୨,
ଫୋନ – ୫୭୦୩୯୬

# ବିଚାର

## ପ୍ରଥମ ଦୃଶ୍ୟ

*(ଭେରୀ--ତୁରୀ ଶବ୍ଦ । ସିଂହ ରାଜାଙ୍କର ସିଂହାସନ ଖାଲି, ହାତୀ ମନ୍ତ୍ରୀ, ବାଘ ସେନାପତି ଓ ବିଲୁଆ ଭାଟ ଉପସ୍ଥିତ)*

'ବିଲୁଆ- ହୁକେ, ହୁକେ, ହୋ- ବଣବାସୀ ସମସ୍ତ ପଶୁପକ୍ଷୀ ସାବଧାନ- ଅରଣ୍ୟାଧିପତି-ମହା ବଳଶାଳୀ, ପ୍ରବଳ ପ୍ରତାପୀ-ପ୍ରଜାନୁରଞ୍ଜନ ରାଜା-ବୀର ପ୍ରବର-ରାଜାଧିରାଜ, ସିଂହ ମହାରାଜା ବିଜେ- (ଭେରୀ ତୁରୀ ଶବ୍ଦ)

ସିଂହ- (ପ୍ରବେଶି ସିଂହାସନରେ ବସିଲେ) ହାତୀ ମହାମନ୍ତ୍ରୀ ! ବଣ ରାଜ୍ୟରେ ସବୁ କୁଶଳ ତ?



ହାତୀ- (ପେଁ-ପେଁ ଶବ୍ଦ) ମହାରାଜ ! ବଣର ସବୁ ପଶୁ ପକ୍ଷୀ ଭାଇ ଭାଇ ପରି ଚଳୁଛନ୍ତି । ହିଂସ୍ର ଜନ୍ତୁମାନେ ଅଯଥାରେ ଆଉ ହିଂସା କରୁ ନାହାନ୍ତି । ବରଂ ଜଣଙ୍କ ବିପଦରେ ଅନ୍ୟମାନେ ସାହାଯ୍ୟ କରୁଛନ୍ତି । ଆମର ଏଇ ବଣରାଜ୍ୟ ଏବେ ସ୍ୱର୍ଗରେ ପରିଣତ ହୋଇ ପାରିଛି - ମହାରାଜ ! ମାତୃଭୂମିର ଉନ୍ନତି ପାଇଁ ସମସ୍ତେ ମନପ୍ରାଣ ଢାଳି ଦେଇଛନ୍ତି । ପ୍ରଜା ସକଳେ ସୁଖ ଆଉ ଶାନ୍ତିରେ ବାସ କରୁଛନ୍ତି ।

ସିଂହ- ଧନ୍ୟ ହେଲି ମହାମନ୍ତ୍ରୀ ! ଆପଣଙ୍କ ପରି ବିଚାରବନ୍ତ ଆଉ ଶାନ୍ତିପ୍ରିୟ ମନ୍ତ୍ରୀକୁ ପାଇ ମୁଁ ଧନ୍ୟ ହୋଇଛି । ମୋର ପ୍ରଜା ସୁଖରେ ଅଛନ୍ତି, ସେତିକି ଯଥେଷ୍ଟ ।
(ବୁଲିପଡ଼ି)- ତେବେ ସେନାପତି ବାଘ ମହାଶୟ ! କୁହନ୍ତୁ, ଆମ ରାଜ୍ୟର ସୈନ୍ୟ ବଳ ଠିକ୍ ଅଛି ତ?

ବାଘ- (ଗର୍ଜି) ମହାରାଜ! ଆମ ରାଜ୍ୟର ସବୁ ସୈନ୍ୟକୁ ବିଭିନ୍ନ ଦଳରେ ଭାଗ କରା ଯାଇଛି । ଶିକାରୀ ସୈନ୍ୟମାନେ ରାଜ୍ୟର ଚାରି ପାଖରେ ପହରା ଦେଉଛନ୍ତି । କୌଣସି ପ୍ରକାର ବିପଦର ସୂଚନା ପାଇଲେ, ଗୁପ୍ତଚର ମାଙ୍କଡ଼ ସଙ୍ଗେ ସଙ୍ଗେ ମହାରାଜାଙ୍କ ପାଖରେ ସମ୍ବାଦ ଦେଉଛି । ତେଣୁ ବଣରାଜ୍ୟରେ ଶତ୍ରୁ ପ୍ରବେଶ କରି ପାରୁ ନାହାନ୍ତି । ଆମର ସୈନ୍ୟ ବଳ ଦେଖି ପଡ଼ୋସୀ ଜଳରାଜ୍ୟର କୁମ୍ଭୀର ରାଜା ଥରହର ହେଲାଣି ।

ସିଂହ- (ଆଶ୍ଚର୍ଯ୍ୟ ହୋଇ) କୁମ୍ଭୀର ରାଜା-ସେ ପୁଣି କିଏ?

ବାଘ- ମହାରାଜ! ବଗ ମାଛ ମାରିବାକୁ ଯାଇଥିଲା । ସେ ଦେଖି ଆସିଛି, ଆମ ରାଜ୍ୟକୁ ଲାଗି ଯେଉଁ ଜଳ ଭଣ୍ଡାରଟା ଅଛି, ସେଥିରେ ଗୋଟାଏ ବଡ଼ କୁମ୍ଭୀର ରହେ । ମାଛ, କଙ୍କଡ଼ା,

କଇଁଛ, ଗେଣ୍ଡା ଆଉ ଶାମୁକାଙ୍କୁ ନେଇ ଗୋଟାଏ ଜଳରାଜ୍ୟ ଗଢ଼ିଛି । ନିଜେ ସେ କୁମ୍ଭୀର ଜଳ ଭଣ୍ଡାରରେ ରାଜା ହୋଇଛି । ବଣରାଜ୍ୟର ପଶୁ ପକ୍ଷୀମାନଙ୍କର ଏକତା ଦେଖି ସେ ହିଂସାରେ ଜଳୁଛି । ମୁଁ ଏ'ସବୁ ଖବର ରଖୁଛି, ମହାରାଜ ।

ସିଂହ– ତେବେ ସେ କୁମ୍ଭୀରର ଉଦ୍ଦେଶ୍ୟ କ'ଣ ?

ବାଘ– ଉଦ୍ଦେଶ୍ୟ ଆଉ କ'ଣ ? ଆମ ଭିତରେ ଏକତା ନ ରହିଲେ, ସୁବିଧା ଦେଖି ସେ ଆମର ପ୍ରଜାଙ୍କ ଭିତରୁ ଗୋଟାଏ ଗୋଟାଏ କରି ଧରି ଖାଇବ ।

ସିଂହ– (ଗର୍ଜି) ଏତେ ସାହାସ ! ସାମାନ୍ୟ କୁମ୍ଭୀରଟାର ପୁଣି ଏତେ ବୁଦ୍ଧି !! ଆଚ୍ଛା--ମହାମନ୍ତ୍ରୀ, ଏଥି ପାଇଁ କ'ଣ କରା ଯାଇପାରେ?

ହାତୀ– ମହାରାଜ ! ଏଥିପାଇଁ ବ୍ୟସ୍ତ ହେବାର କିଛି ନାହିଁ । ଆମ ରାଜ୍ୟର ପଶୁ ପକ୍ଷୀମାନେ ଯଦି ଏକ ମନ ଏକ ପ୍ରାଣ ହୋଇ ଚଳିବେ, ତେବେ ଯେତେ ଶକ୍ତିଶାଳୀ ଶତ୍ରୁ ହେଲେ ମଧ୍ୟ ଆମର କିଛି କ୍ଷତି କରି ପାରିବ ନାହିଁ ।

ବାଘ– (ରାଗରେ) ମହାରାଜ ! ଆପଣ ଆଦେଶ ଦିଅନ୍ତୁ । ମୁଁ ମଇଁଷି ସୈନ୍ୟ ବଳ ନେଇ ସେ ଜଳ ଭଣ୍ଡାରକୁ ଛାରଖାର କରିଦେବି । ଗର୍ବି କୁମ୍ଭୀରକୁ ମାରି ଆପଣଙ୍କ ପାଦତଳେ ଆଣି ପକାଇଦେବି ।

ହାତୀ– ସେନାପତି ମହାଶୟ, ଯେହେତୁ ଆମେ ଅହିଂସାକୁ ପରମଧର୍ମ ବୋଲି ଧରି ନେଇଛେ, ହିଂସା କାର୍ଯ୍ୟ କରିବା ଆମ ପକ୍ଷେ ଠିକ୍ ହେବ ନାହିଁ । ଭବିଷ୍ୟତରେ ଯଦି ଦୁଷ୍ଟ କୁମ୍ଭୀର ଆମକୁ କେବେ ଆକ୍ରମଣ କରେ, ତେବେ ତାକୁ ଉଚିତ ଶାସ୍ତି ଦିଆଯିବ ।

ସିଂହ– ଠିକ୍ କହିଛନ୍ତି, ମହାମନ୍ତ୍ରୀ।
–ହଁ, ଦୂତ କାଉକୁ ମୋ ପାଖକୁ ଡାକିଦିଅ।

କାଉ– (କାଉର ପ୍ରବେଶ) କା–କା, କା–କା, ହାଜର ହେଲି ମହାରାଜ !
– କା – କା।

ସିଂହ– ଦୂତ ! ତୁମେ ବଣ ରାଜ୍ୟରେ ସବୁ ପଶୁ–ପକ୍ଷୀକୁ ବୁଝାଇ ଦିଅ। ଆମେ ସବୁ ଭାଇ ଭାଇ, ପର କଥାକୁ ଶୁଣ ନାହିଁ।



କାଉ– କା–କା, କା–କା –ଯଥା ଆଜ୍ଞା ମହାରାଜ, କା–କା। ଏଇ ତ ମୁଁ ଏବେ ଚାଲିଲି। କା–କା, କା–କା।
ପଶୁ ପକ୍ଷୀ ଭାଇ ଭାଇ,
ପର କଥା ଶୁଣ ନାହିଁ। କା–କା, କା–କା–
(ଧୀରେ ଧୀରେ କମିଯିବ) (ପ୍ରସ୍ଥାନ)

## ଦ୍ୱିତୀୟ ଦୃଶ୍ୟ

*(ଜଳ ରାଜ୍ୟର ରାଜା କୁମ୍ଭୀର–ନଈ ପଠା ସିଂହାସନରେ ବସିଛନ୍ତି । କଙ୍କଡ଼ା ମନ୍ତ୍ରୀ ଉପସ୍ଥିତ)*



କୁମ୍ଭୀର– ହାଃ, ହାଃ ହାଃ, କ'ଣ–ଶୁଣିଲ କଙ୍କଡ଼ା ମହାମନ୍ତ୍ରୀ ! ଡାମରା କାଉର କଥା ଶୁଣି ମୋତେ ତ ହସ ଲାଗୁଛି । ପଶୁ–ପକ୍ଷୀ ପୁଣି ଭାଇ ଭାଇ !! ହାଃ–ହାଃ–ହାଃ । (ବେଖାତିର ହସ)

କଙ୍କଡ଼ା– ନା–ନା, ଏଥିପାଇଁ କିଛି ଗୋଟାଏ କରିବାକୁ ହେବ ମହାରାଜ । କଳେ, ବଳେ, କୌଶଳେ ପଶୁ ପକ୍ଷୀମାନଙ୍କର ଏକତାକୁ ଭାଙ୍ଗିବାକୁ ପଡ଼ିବ ।

କୁମ୍ଭୀର– ତମେ ଠିକ୍ କହିଛ ମହାମନ୍ତ୍ରୀ, ତୁମେ ହେଉଛ – ମୋର ଯୋଗ୍ୟତମ ମନ୍ତ୍ରୀ । ପଶୁ–ପକ୍ଷୀମାନେ ହେଲେ, ଆମର ଚିର ଶତ୍ରୁ । ତାଙ୍କର ବଂଶ ନିପାତ ନକଲେ, ଆମର ଲକ୍ଷ୍ୟ ପୂରଣ ହୋଇ ପାରିବ ନାହିଁ ।

କଙ୍କଡ଼ା– ହଁ ମହାରାଜ ! ଆପଣ ବିଲକୁଲ ଠିକ୍ କହିଛନ୍ତି । ବଦମାସ ବିଲୁଆ ଆମ କଙ୍କଡ଼ାମାନଙ୍କ ଗାତରେ ଲାଙ୍ଗୁଳଟାକୁ ଭର୍ତ୍ତିକରି ଆମ ଭାଇମାନଙ୍କୁ ରଡ଼ମଡ଼ କରି ଚୋବାଇ ଖାଏ। ସେ କଥା ଭାବିଲେ– ମୋ ରକ୍ତ ଟକ୍–ମକ୍ ହୋଇ ଫୁଟି ଉଠୁଛି। ତା'ର ପ୍ରତିଶୋଧ ନେବାକୁ ପଡ଼ିବ। ତେବେ...

କୁମ୍ଭୀର– ତେବେ ଆଉ କ'ଣ ? ସେଇ ବିଲୁଆକୁ ତ ଟିକେ ଟେକିଟାକି ଦେଲେ ହେଲା। ତୁମେ ସେ ଦାୟିତ୍ୱ ନିଅ।

କଙ୍କଡ଼ା– କିନ୍ତୁ ମହାରାଜ ! ବିଲୁଆ ଯେ ଧୂର୍ତ୍ତ! ତାକୁ ସମସ୍ତେ ଚତୁର ପଶୁ ଭାବେ ଜାଣନ୍ତି। ସେ ମୋତେ ଦେଖି ଦେଲେ, ସଙ୍ଗେ ସଙ୍ଗେ ରାଡ଼ୁ ମାଡ଼ୁ କରି ଚୋବେଇ ଦେବ ଯେ–।

କୁମ୍ଭୀର– ନା ନା– ତା'ହେଲେ ତୁମକୁ ଯିବାକୁ ପଡ଼ିବ ନାହିଁ। ବେଙ୍ଗ ହେଉଛି – ଉଭୟଚର ଜୀବ। ଆଉ ସେ ହେଉଛି, ଆମ ରାଜ୍ୟର ସବୁଠାରୁ ଚତୁର ଜୀବ। ତାକୁ ମୋ ପାଖକୁ ଡାକ। ବିଲୁଆ ପାଖକୁ ଦୂତକରି ମୁଁ ପଠାଇବି।

କଙ୍କଡା– ଯଥା ଆଜ୍ଞା ମହାରାଜ। (ତାଳି ମାରି ବେଙ୍ଗକୁ ଡାକିବା)

ବେଙ୍ଗ– (ବେଙ୍ଗର ପ୍ରବେଶ) କେଁ କଟର, କେଁ କଟର– ମହାରାଜ! ହଜୁର। ଆଦେଶ ହେଉ।

କଙ୍କଡା– ମହାରାଜ ତୁମକୁ ଦୂତ କରି ପଠାଇବାକୁ ଚାହାନ୍ତି।

ବେଙ୍ଗ– ଧନ୍ୟ ହେଲି ମହାରାଜ, ଆପଣଙ୍କ ଆଦେଶକୁ ମୁଁ ଅକ୍ଷରେ ଅକ୍ଷରେ ପାଳନ କରିବି।

କୁମ୍ଭୀର– ଧନ୍ୟବାଦ ବେଙ୍ଗ ବନ୍ଧୁ। ନିଅ ଏଇ ପାଟ ଶାଢୀ ଖଣ୍ଡିକ। ତୁମେ ଯାଅ– ବଣର ପଶୁ ପକ୍ଷୀମାନଙ୍କର ଏକତାକୁ ଭାଙ୍ଗି ଦେଇ ଆସିବ। ତା' ପରେ ବଣରାଜ୍ୟ ବଳେ ବଳେ ଛାର–ଖାର ହୋଇଯିବ। ମୁଁ ହେବି–ଜଳ ଆଉ ସ୍ଥଳର ଏକମାତ୍ର ଶାସକ। ହାଃ–ହାଃ–ହାଃ (ବୁଲିପଡ଼ି) ହଁ, ମହାମନ୍ତ୍ରୀ ! ବେଙ୍ଗ ବନ୍ଧୁଙ୍କୁ ଟିକେ କୁଟନୀତି ଶିଖାଇ ଦିଅ।

କଙ୍କଡ଼ା– ହଁ–ଆସ ବେଙ୍ଗ ବନ୍ଧୁ, (ପୁଡ଼ିଆ ବଢ଼ାଇ) ନିଅ ଏଇ ବଣ କୁକୁଡ଼ାଟିକୁ ନିଅ। ଏହାକୁ ସେଇ ବିଲୁଆ ଗାତ ପାଖରେ ରଖି ସକାଳୁ ସକାଳୁ ତୁମେ ଗୀତ ନାଚରେ ମାତିଯିବ। ତା'ପରେ ବିଲୁଆକୁ ଏ' କୁକୁଡ଼ାଟାକୁ ଦେଖାଇ, ତାକୁ ବିଲୁଆ–ମହାରାଜ ବୋଲି ସମ୍ବୋଧନ କରିବ।

କୁମ୍ଭୀର– ବିଲୁଆକୁ ଠିକ୍ ସେଇ ଔଷଧ କାମ କରିବ ମହାମନ୍ତ୍ରୀ।

ବେଙ୍ଗ– (ପୁଡ଼ିଆ ନେଇ) ମୁଁ ତେବେ ଚାଲିଲି ମହାରାଜ, ଅବସ୍ଥା ଦେଖି ବ୍ୟବସ୍ଥା କରିବି। କେଁ କଟର କେଁ...... (ପ୍ରସ୍ଥାନ)

କୁମ୍ଭୀର– ଯାଅ ବେଙ୍ଗ ବନ୍ଧୁ କୁଶଳରେ ଫେରି ଆସ।



## ତୃତୀୟ ଦୃଶ୍ୟ

*(ସକାଳ ହେବାର ସୂଚନା । ବିଲୁଆ ବୁଦାମୂଳେ ଲୁଚି ବସିଥିବ)*

ବେଙ୍ଗ– (ନାଚ ଗୀତରେ ମାତିଛି)
କେଁ କଟର– କେଁ, କେଁ କଟର–କେଁ, କେଁ କଟର – କେଁ ।

ବିଲୁଆ– ଆଃ ! କି' ସୁନ୍ଦର ସକାଳଟାଏ ହୋଇଛି ମ ? ନରମ ଖରା, ପଶୁପକ୍ଷୀଙ୍କର ମଧୁର ଗୀତ ସାଙ୍ଗକୁ – ଆରେ ବାଃ! ଲୁଣିବେଙ୍ଗଟା ଏଠି ଗୀତ ଗାଇ ବଢ଼ିଆ ନାଚ ଦେଖାଉଛି ତ । ଆଜି ଦିନଟା ମୋର ଖୁବ୍ ଭଲରେ ଯିବ । ବେଙ୍ଗ ପାଖକୁ ଟିକେ ଯାଏ । (ବେଙ୍ଗ ପାଖକୁ ଯିବ)



ବେଙ୍ଗ– କେଁ–କଟର କେଁ, କେଁ କଟର – କେଁ । (ନାଚ କରୁଥିବ)

ବିଲୁଆ– ବାଃ! ବାଃ! କି' ସୁନ୍ଦର ନାଚ! ଅପୂର୍ବ, ଅପୂର୍ବ ତୋର ନାଚ। କିରେ ବେଙ୍ଗ! ତୋର ଜଳଭଣ୍ଡାର ଛାଡ଼ି ତୁ ଆଜି ଏଠି କାହିଁକି ନାଚୁଛୁ ?

ବେଙ୍ଗ– (ଅଭିନୟ ସହ ଗୀତ)
କେଁ-କଟର କେଁ, କେଁ କଟର–କେଁ ।
ଦେବି ଖବର ବିଲୁଆ ରାଜା –
ଘେନ ଜୁହାର ହେ । ।୦।
କେଁ କଟର କେଁ, କେଁ କଟର କେଁ
ବିଲୁଆ ରାଜା ମାରିବ ମଜା –
କୁକୁଡ଼ା କରେ ଚେଁ, କଟର କେଁ ।୧।

ବିଲୁଆ– (ପାଖକୁ ଲାଗିଯାଇ) ଆରେ ବେଙ୍ଗ, ମୋତେ ତୁ ରାଜା କହୁଛୁ। କହିଲୁ– ଆମର ତ ଜଣେ ରାଜା ସିଂହ ଅଛି। ମୁଁ ପୁଣି କେମିତି ରାଜା ହେଲି ?

ବେଙ୍ଗ– (ହସି) ନା–ନା ମହାରାଜ! ସିଂହ ହେଉଛି– ବଣର ରାଜା, ଆପଣ ତ ଗାତରେ ରହନ୍ତି, ଆଉ କିଆ ବୁଦାମୂଳେ ଥା'ନ୍ତି, ତେଣୁ ଆପଣ ହେଲେ – ଗାତର ରାଜା। ଏକଥା କ'ଣ କେହି ଜାଣନ୍ତି ନାହିଁ। ଆମ ରାଜା କୁମ୍ଭୀର କହିଛନ୍ତି, ଆପଣ ବି ଜଣେ ବଡ଼ ରାଜା। କାରଣ, ବୁଦ୍ଧି ଯାହାର, ବଳ ତାହାର। ଆପଣଙ୍କ ବୁଦ୍ଧିର ତ ତୁଳନା ନାହିଁ। ନିଅନ୍ତୁ, ଏଇ କୁକୁଡ଼ାଟା, ଆମ ରାଜା ଆପଣଙ୍କୁ ଭେଟି ଦେଇ ଆମନ୍ତ୍ରଣ କରିଛନ୍ତି। ଆପଣ କେବେ ଆମ ରାଜ୍ୟକୁ ଆସନ୍ତୁ ନା।

ବିଲୁଆ– (ଚିନ୍ତାକରି) ସତରେ ବେଙ୍ଗ, ତୁ ଆଜି ମୋର ଆଖି ଫିଟେଇ ଦେଇଛୁ। ସିଂହ କ'ଣ ବୁଦ୍ଧିରେ ମୋତେ ଟପି ଯିବ କି? ପ୍ରକୃତରେ ମୁଁ ବୁଦ୍ଧିରେ ବଡ଼। ବୋକା ହାତୀକୁ ମୁଁ ଥରେ

ପଙ୍କରେ ବୁଡ଼େଇ ମାରିଥିଲି । ବାଘର ଭଣଜା ହୋଇ ଟାକୁ ପାନେ ଦେଇଥିଲି । ଆଉ ସିଂହ-- ହାଃ--ହାଃ—ହାଃ... ।
ବଣର ସବୁ ପଶୁପକ୍ଷୀ ମୋ ବୁଦ୍ଧି ଦେଖି ଡ଼ରିଯାଆନ୍ତି । ସତରେ ମୁଁ ହିଁ ଗାତ ରାଜ୍ୟର ରାଜା ହେବାକୁ ଯୋଗ୍ୟ ।
(ଉଚ୍ଚ ସ୍ୱରରେ) – ଆଜିଠାରୁ ମୁଁ ରାଜା ହେଲି । ବଣରାଜ୍ୟର ଅଧା ଭାଗ ହେବ – ମୋର ରାଜ୍ୟ ।
(ଗଧିଆକୁ ଯାଉ ଥିବାର ଦେଖି)
– ଆରେ ଏ' ଗଧିଆ, ତୁ କୁଆଡ଼େ ଯାଉଛୁ ? ଶୁଣ – ଶୁଣି ଯା– ଏଠିକି ଆ ।

ଗଧିଆ– (ପାଖକୁ ଆସି) କ'ଣ ବିଲୁଆ ଭାଇ! ଭାରି ଖୁସି ଦେଖା ଯାଉଛ, କଥା କ'ଣ କି ?

ବିଲୁଆ– (ଧମକ ଦେଇ) କିରେ ମୋତେ ବିଲୁଆ ଭାଇ କ'ଣ କହୁଛୁ? ତୁ ଜାଣି ନାହୁଁ କି? ମୁଁ ପରା ଗାତ ରାଜ୍ୟର ରାଜା । କୁମ୍ଭୀର ରାଜାର ଦୂତ – ବେଙ୍ଗ ଏକଥା କହି ଯାଇ ସାରିଲାଣି । ହେଇ ଦେଖ, କୁକୁଡ଼ାଟା– ଭେଟି ଦେଇ ଯାଇଛି । ଆଜି ମୋର ଅଭିଷେକ ହେବ । ତୁ ତ ବଡ଼ ଭାଗ୍ୟବାନ୍ । ମୋତେ ଆଗ ଭେଟିଛୁ, ତେଣୁ ତୁ ହେବୁ ମୋର ମନ୍ତ୍ରୀ ।



ଗଧିଆ– ତା' ହେଲେ ତ ଖୁବ୍ ଭଲ ହେଲା ।
(ପଛକୁ ଚାହିଁ)–ଆସରେ କଟାସ୍, କୋକି, ଠେକୁଆ । ସବୁ ପଶୁ ପକ୍ଷୀ ଧାଇଁଆସ ।
*(ଚେଁ, ଚାଁ ଶବ୍ଦରେ ବଣ କମ୍ପି ଉଠିବ, ଅନ୍ୟ ପଶୁମାନେ ଠୁଳ ହୋଇଯିବେ)*

ବିଲୁଆ– ଭାଇମାନେ ! ମୁଁ ଚତୁର ବିଲୁଆ । ମୁଁ ଗାତ ରାଜ୍ୟର ରାଜା ହେଲି । ସିଂହ ରାଜାଠାରୁ ଆମର ଅଧେ ରାଜ୍ୟ ଛଡ଼େଇ ଆଣିବାକୁ ପଡ଼ିବ । ଚାରିଆଡ଼େ ଗଣ୍ଡଗୋଳ, ଅଶାନ୍ତି ସୃଷ୍ଟି କର । ସମସ୍ତେ ଏକଯୁଟ ହୋଇ ଚାଲ ସିଂହରାଜା ପାଖକୁ ଯିବା । ଆମର ହକ୍ ଦାବି ଛଡ଼େଇ ଆଣିବା ।

ଗଧିଆ- ହଁ, ଭାଇମାନେ ! ସବୁ ଆଗେଇ ଚାଲ ।

ବିଲୁଆ– (ନିଆଁକୁ ହାତ ବଢ଼ାଇ) ହେଇ ଦେଖ ଭାଇମାନେ, ମୁଁ ବଣରେ ନିଆଁ ଲଗାଇ ଦେଇଛି । ମୋର କିଛି କ୍ଷତି ହେବନାହିଁ । ମୁଁ ତ ଗାତ ଭିତରେ ରହିବି, ତମେମାନେ ଆଗକୁ ମାଡ଼ିଚାଲ । ଦେଖିବି–ବଣ ପୋଡ଼ିଗଲେ ବାଘ, ହାତୀ, ସିଂହ କେମିତି କେଉଁଠି ରହିବେ । ହାଃ–ହାଃ...

ଗଧିଆ– ହଁ – ମହାରାଜ, ଦେଖିବା ସିଂହର ବଳ ବେଶି କି ଆମର ବଳ ବେଶି । ନିଆଁ ଜଳି ଉଠିଲାଣି । ଏବେ ଦେଖ କେମିତି ମଜା ବାହାରିବ ।

ବିଲୁଆ– ତେବେ ଚାଲ– ଏକ ସ୍ୱରରେ ଡାକରା ଦେଇ ସିଂହ ପାଖକୁ ଯିବା । (ସ୍ଲୋଗାନ ଦେଇ ଚାଲିଲେ)

ଗଧିଆ– ଆମର ରାଜା...ବିଲୁଆ ରାଜା।

ସମସ୍ତେ– ବିଲୁଆ ରାଜା, ବିଲୁଆ ରାଜା।

ଗଧିଆ– ବିଲୁଆ ରାଜା, ଗାତର ରାଜା।

ସମସ୍ତେ– ଗାତର ରାଜା, ଗାତର ରାଜା

ଗଧିଆ– ସିଂହ ରାଜାକୁ – ମାନିବୁ ନାହିଁ।

ସମସ୍ତେ– ମାନିବୁ ନାହିଁ, ମାନିବୁ ନାହିଁ।

ଗଧିଆ– ବଣ ରାଇଜ – ଭାଗ କର।

ସମସ୍ତେ– ଭାଗ କର, ଭାଗ କର। (ପ୍ରସ୍ଥାନ)



## ଚତୁର୍ଥ ଦୃଶ୍ୟ

*(କୁମ୍ଭୀର ରାଜା ଓ କଙ୍କଡ଼ା ମନ୍ତ୍ରୀଙ୍କର ବିଚାର ଚାଲିଛି। ବେଙ୍ଗ ଉପସ୍ଥିତ ଥିବ)*

କୁମ୍ଭୀର– ଧନ୍ୟ ମହାମନ୍ତ୍ରୀ, ଧନ୍ୟ ତୁମର କୁଟନୀତି। ଆମର ପ୍ରକୃତ ଉଦ୍ଦେଶ୍ୟ ଏବେ ସଫଳ ହୋଇଛି।

କଙ୍କଡ଼ା– ଠିକ୍ କହିଛନ୍ତି ମହାରାଜ। ହେଇ ଦେଖନ୍ତୁ–ବିଲୁଆଟା ରାଜା ହେବାର ନିଶାରେ କିପରି ନିଜର ସର୍ବନାଶ କରିବାକୁ ଯାଉଛି। ବଣର ସବୁ ଛୋଟ ଛୋଟ ଜୀବଜନ୍ତୁଙ୍କୁ ଏକଯୁଟ୍ କରି ସେ କେମିତି ଅଧା ବଣ ରାଜ୍ୟ ଦାବି କରୁଛି। ତା' ପରେ.... ହାଃ–ହାଃ–ହାଃ।

କୁମ୍ଭୀର– ନା–ନା ମହାମନ୍ତ୍ରୀ! ଏତିକିରେ ଆମେ ସନ୍ତୁଷ୍ଟ ହୋଇଗଲେ ଚଳିବ ନାହିଁ। ଆମକୁ ଆହୁରି ବହୁତ କିଛି କରିବାକୁ ପଡ଼ିବ। ସେ ଯେଉଁ ମାଙ୍କଡ଼ଟାକୁ......

କଙ୍କଡ଼ା– ଓହୋ– ବୁଝିଗଲି ମହାରାଜ। ସେ କଳା ମୁହାଁ ବନ୍ଦର ତ! ତା' କଥା କୁହନ୍ତୁ ନାହିଁ ମହାରାଜ। ସିଏ ତ ବଳେ ବଳେ ପାନେ ପାଇଯିବ।

କୁମ୍ଭୀର– ମୁଁ ସେ କଥା କହୁ ନାହିଁ – ମହାମନ୍ତ୍ରୀ। ତାକୁ କଳେ, ବଳେ, କୌଶଳେ ଆମ ହାତ ମୁଠାକୁ ଆଣିବାକୁ ପଡ଼ିବ।

କଙ୍କଡ଼ା– ଇଏ ତ ବିଲକୁଲ୍ ଅସମ୍ଭବ କଥା ମହାରାଜ!

କୁମ୍ଭୀର– ମୁଁ ମୋର କୁଟନୀତି ବଳରେ ସବୁ ଅସମ୍ଭବକୁ ସମ୍ଭବ କରିବାକୁ ଚାହେଁ ମହାମନ୍ତ୍ରୀ, ତୁମେ ଜାଣ, ବଣର ରାଜା ସିଂହକୁ ମାଙ୍କଡ଼ ସବୁ ଗୁପ୍ତ ଖବର ଦିଏ। ବିଲୁଆ ପରି ମାଙ୍କଡ଼ ମଧ୍ୟ ଆଉ ଗୋଟାଏ ଚତୁର ଜୀବ। ସେ କୁଦାମାରି ଏ' ଗଛରୁ ସେ ଗଛକୁ ଡେଇଁ ବଣ ଯାକର ଖବର ସଂଗ୍ରହ କରି ପକାଏ। ତାକୁ କେହି ଧରି ପାରନ୍ତି ନାହିଁ। ତେଣୁ ତାକୁ ଆକାଶ ରାଜା ବୋଲି କୁହାଯାଏ। ହଁ, ଶୁଣ ବେଙ୍ଗ ବନ୍ଧୁ ! ତୁମେ ମାଙ୍କଡ଼କୁ କିଛି ଗୋଟାଏ ଲୋଭ ଦେଖାଇ, ତା'ର ମନକୁ କିଣି ନିଅ। ତା' ପରେ, ଆମେ ହେବା......

କଙ୍କଡ଼ା– ଜଳ, ସ୍ଥଳ ଆଉ ଆକାଶର ରାଜା। ହାଃ–ହାଃ–ହାଃ। ତା'ପରେ ତୁମେ ବେଙ୍ଗ ହେବ – ମହାରାଜ କୁମ୍ଭୀରଙ୍କର...

କୁମ୍ଭୀର– କୁଳ ପୁରୋହିତ। ହାଃ–ହାଃ–ହାଃ।

ବେଙ୍ଗ– ତେବେ ମୁଁ ଚାଲିଲି ମହାରାଜ, ଅବସ୍ଥା ଦେଖି ବ୍ୟବସ୍ଥା କରିବି। ସେ ଦୁଷ୍ଟ ମାଙ୍କଡ଼ଟା ତ ଏବେ ନଈ ପଠାରେ ବୁଲୁଥିଲା–ଦେଖେ ଏବେ ସେ କେଉଁ ଗଛରେ ବସିଥିବ।

କୁମ୍ଭୀର– ହଁ, ତୁମେ ଶୀଘ୍ର ଯାଅ।

କଙ୍କଡ଼ା– ରୁହ ବେଙ୍ଗ ବନ୍ଧୁ, ମୁଁ ମଧ୍ୟ ତୁମ ସାଙ୍ଗରେ ଯିବି। ଦୁହେଁ ମିଶି ମାଙ୍କଡ଼ର ମନକୁ ପରିବର୍ତ୍ତନ କରିବା।

କୁମ୍ଭୀର– ହଁ ହଁ, ଦୁହେଁ ମିଶି ମାଙ୍କଡ଼ ପାଖକୁ ଯାଅ।

ବେଙ୍ଗ– କେଁ–କଟର କେଁ...କେଁ କଟର କେଁ। (ପ୍ରସ୍ଥାନ)

## ପଞ୍ଚମ ଦୃଶ୍ୟ

*(ଗଛ ମୂଳେ ମାଙ୍କଡ଼ ବସି ଫଳ ଖାଉଛି ।)*

ମାଙ୍କଡ଼- ଆଃ ! କି ସୁନ୍ଦର ଏ' ନଈ କୂଳିଆ ପବନ !! ବଣର ଫଳ, ନଈର ଜଳ ସବୁ ବଢ଼ିଆ । ସୁଲୁସୁଲିଆ ପବନ ଟିକେ ଦେହରେ ବାଜିଲେ- ମନଟା ହାଲୁକା ଲାଗୁଛି । ଗୀତଟିଏ ଗାଇବାକୁ ଇଚ୍ଛା ହେଉଛି ।

ଗୀତ- ସୁନ୍ଦର ମୋ ଜନମ ଭୂଇଁ -
  ସୁନ୍ଦର ତା' ସବୁଜ ବନ,
ସୁନ୍ଦର ତା' ଝରଣା ନଈ । (ଘୋଷା)

ଏଇ ମାଟିର ମଧୁର ଫଳ,
ଦେହରେ ମୋର ଦେଇଛି ବଳ ।
ଏଇ ବଣର ଯେତିକି ଜୀବ-
  ସକଳେ ଆମେ ଭଉଣୀ ଭାଇ । ୧ ।
ଏଇ ବଣର ଝରଣା ଜଳ,
ଆହା କି ମିଠା ବଡ଼ ଶୀତଳ ।
ପାଳେ ପରଜା ଆମରି ରଜା
  ସିଂହ ପରି ରାଜା ତ ନାହିଁ । ୨ ।

(ବେଙ୍ଗ ଓ କଙ୍କଡ଼ାର ପ୍ରବେଶ)

ବେଙ୍ଗ- କ'ଣ ମାଙ୍କଡ଼ ଭାଇ, କେଁ-କଟର କେଁ ।

କଙ୍କଡ଼ା– (କପଟ ରାଗ କରି) ଆରେ, ଏ – ଅଭଦ୍ର କେଉଁଠିକାର ? ତୋତେ ଟିକେ ଭଦ୍ରତା ଜଣାନାହିଁ। ଆଜିକାଲି ଦୁନିଆ ଆସି କେଉଁଠି ହେଲାଣି, ତୋତେ ଜଣାନାହିଁ? କହିଲା କ'ଣ ନା–ମାଙ୍କଡ଼ ଭାଇ। ଆରେ ମାଙ୍କଡ଼ ଗୋଟାଏ କ'ଣ? ଆରେ ଇଏ ହେଉଛନ୍ତି– ମହାବୀର ବଜରଙ୍ଗ ବାଲି– ଶ୍ରୀ ଶ୍ରୀ ହନୁମାନଜୀ। ଚାଲ ଦୁହେଁ ତାଙ୍କୁ ଭକ୍ତିପୂତ ଭୂମିଷ୍ଠ ପ୍ରଣାମ ଜଣାଇବା।

ବେଙ୍ଗ– କେଁ କଟର କେଁ (ହାତଯୋଡ଼ି) କେଁ କଟର କେଁ । ମୋର ଭୁଲ ହୋଇଗଲା ମହାମନ୍ତ୍ରୀ ! ମୋତେ କ୍ଷମା କରିଦିଅନ୍ତୁ। – ହଁ, ମହାପ୍ରଭୁ ହନୁମାନଜୀ । ଏ' ଅଧମର ପ୍ରଣାମ ଗ୍ରହଣ କରନ୍ତୁ। (ପ୍ରଣାମ ହେବା)

ମାଙ୍କଡ଼– ଆରେ, ବେଙ୍ଗ ଆଉ କଙ୍କଡ଼ା, ତୁମେ ଦୁହେଁ କୁଆଡ଼େ ବାହାରିଲ? କ'ଣ ସବୁ ଖବର, ଭଲ ତ ?

କଙ୍କଡ଼ା– ଆଉ କୁଆଡ଼େ ଯିବୁ ମହାପ୍ରଭୁ! ଏଇ ନଈ ପଠାକୁ ଆମେ ଦୁଇ ସଂଗାତ ଟିକେ ବୁଲି ଆସିଥିଲୁ। ଆପଣଙ୍କ ମଧୁର କଣ୍ଠ ସଙ୍ଗୀତ ହଠାତ୍ ଆମ କାନରେ ବାଜିଗଲା। (ହସି) ସେଇଠୁ ଏଣିକି ଟିକେ ଚାଲି ଆସିଲୁ ଆଉ...

ବେଙ୍ଗ– କେଁ କଟର, କେଁ କଟର – ମହାରାଜ। ହଁ ମହାରାଜ, ଆମର ରାଜା କୁମ୍ଭୀର କହୁଥିଲେ। ଆପଣ କାଳେ ତ୍ରେତୟା ଯୁଗର ଶ୍ରେଷ୍ଠ ବୀର ଥିଲେ। ମହାପ୍ରଭୁ ରାମଚନ୍ଦ୍ର ଆପଣଙ୍କ ଦ୍ୱାରା ସୀତାଙ୍କୁ ପାଇଥିଲେ। ଆପଣ ନିଜେ ପବନ ସୁତ ହନୁମାନ ହୋଇ ସାମାନ୍ୟ ଗୋଟାଏ ପଶୁ, ସିଂହର ଅଧୀନରେ ରହିଛନ୍ତି। ଏଇଟା ଆମ ରାଜାଙ୍କୁ ଭାରି ବାଧୁଛି। ସେ ଆମକୁ

ଦୂତ କରି ଆପଣଙ୍କ ନିକଟକୁ ପଠାଇଛନ୍ତି । କେଁ-କଟର, କେଁ-କଟର ।

କଙ୍କଡ଼ା- ହଁ ମହାରାଜ, ସେଇଥି ପାଇଁ ତ ଆମେ ଆପଣଙ୍କ ପାଖକୁ ଆସିଛୁ । ଆମେ ବି ଆପଣଙ୍କୁ ରାଜା ହିସାବରେ ମାନିବାକୁ ପ୍ରସ୍ତୁତ ଅଛୁ ।

ବେଙ୍ଗ- ଆପଣ ଖାଲି ଥରେ ରାଜି ହେଇ ଯାଆନ୍ତୁ ନା...... (ହାତଯୋଡ଼ି)

ମାଙ୍କଡ଼- (ଆଶ୍ଚର୍ଯ୍ୟ ହୋଇ) ରାଜା, ଆରେ ଏ' ବଣ ମୁଲକରେ ତ ଜଣେ ମାତ୍ର ରାଜା ହେଉଛନ୍ତି- ମହା ପ୍ରବଳ ପ୍ରତାପୀ ସିଂହ । ମୁଁ ହେଲି ସାମାନ୍ୟ ମାଙ୍କଡ଼ଟାଏ । ମୋର ଘର ନା' ଦ୍ୱାର ଅଛି ? ଏ' ଗଛ ସେ ଗଛ ଡେଇଁ ଫଳ ମୂଳ ଖାଇ ମୁଁ ବଞ୍ଚେ । ମୁଁ ପୁଣି ଗୋଟାଏ କି ରାଜା ହେବି ?

ବେଙ୍ଗ- କେଁ-କଟର, କେଁ-କଟର । ନିଜକୁ ଏତେ ଛୋଟ ମନେ କରନ୍ତୁ ନାହିଁ ମହାରାଜ ! ସିଂହ ସିନା ବଣ ଭୂଇଁର ରାଜା, କିନ୍ତୁ ସେ ତ ଗଛ ଉପରେ ରହେ ନାହିଁ । ଆପଣ ଏ' ଗଛରୁ ସେ ଗଛ ଡେଇଁ ଆକାଶରେ ରହନ୍ତି । ତେଣୁ ଆପଣ ଆକାଶ ରାଜ୍ୟର ରାଜା ହେଇ ଯାଆନ୍ତୁ ନା । ଦେଖିବେ ସବୁ ପଶୁ ପକ୍ଷୀ ଆପଣଙ୍କୁ ହିଁ ମାନିବେ ।

କଙ୍କଡ଼ା- ହଁ ମହାରାଜ ! ଆପଣ ଆକାଶ ରାଜ୍ୟର ରାଜା ହିସାବରେ ଆଜି ଅଭିଷେକ ହେବେ । ଥରେ ରାଜା ହେଇ ଦେଖନ୍ତୁ ନା, କେମିତି ମଜା ଲାଗିବ । ସବୁ ଆପେ ଆପେ ଠିକ୍ ହୋଇଯିବ । ଆମେ ଆପଣଙ୍କୁ ନୂଆ ରାଜପ୍ରସାଦ ଗଢ଼ାଇ ଦେବୁ । ସେଥିପାଇଁ ଚିନ୍ତା କରନ୍ତୁ ନାହିଁ ।

ବେଙ୍ଗ– ଆପଣଙ୍କୁ ଆଉ ଗଛରେ ରହି ଖରା ବର୍ଷା ସହିବାକୁ ପଡ଼ିବ ନାହିଁ ମହାରାଜ!

ମାଙ୍କଡ଼– (ଚିନ୍ତା କରି) ତେବେ ମୋତେ କଣ କରିବାକୁ ହେବ ?

ବେଙ୍ଗ– କେଁ–କଟର, ମହାରାଜ। କେଁ କଟର। ଆପଣଙ୍କୁ ଗୋଟାଏ ନୂଆଦଳ ଗଠନ କରିବାକୁ ହେବ। ଯେଉଁ ପଶୁ ପକ୍ଷୀମାନେ ଗଛ ଉପରେ ରହୁଛନ୍ତି, ସେମାନଙ୍କୁ ନେଇ ଆପଣ ସ୍ୱତନ୍ତ୍ର ରାଜ୍ୟଟିଏ ଗଠନ କରିବେ। ସିଂହ ରାଜାଠାରୁ ଆପଣ ଆଗ ଅଲଗା ହେଇ ଯାଆନ୍ତୁ ନା, ସବୁ ଠିକ୍ ହୋଇଯିବ।

କଙ୍କଡ଼ା– ହଁ ମହାରାଜ, ତା' ପର କାମ ସବୁ ଆମେ କରିଦେବୁ।

ମାଙ୍କଡ଼– (ରଡ଼ିଛାଡ଼ି) ରେ–ରେ ବନବାସୀ ପଶୁ ପକ୍ଷୀ, ଶୁଣିନିଅ... ମୁଁ ଆଜିଠାରୁ ଆକାଶ ରାଜ୍ୟର ରାଜା ହେଲି। ବୃକ୍ଷବାସୀ ସବୁ ପଶୁ ପକ୍ଷୀମାନେ ମୋର ପ୍ରଜା ହେଲେ। ଆସ, ଆମେ ଆମ ରାଜ୍ୟକୁ ଅଧିକାର କରିନେବା।
*(ଗୋଟିଏ ଗୋଟିଏ ପକ୍ଷୀ ଓ କେତୋଟି ଗଛଚଢ଼ା ପଶୁ ଆସି ପହଞ୍ଚିଲେ)*

କଙ୍କଡ଼ା– ଆମର ରାଜା – ମାଙ୍କଡ଼ ରାଜା।

ସମସ୍ତେ– ମାଙ୍କଡ଼ ରାଜା, ମାଙ୍କଡ଼ ରାଜା।

କଙ୍କଡ଼ା– ଆମର ଲୋଡ଼ା – ଆକାଶ ରାଜ୍ୟ।

ସମସ୍ତେ– ଆକାଶ ରାଜ୍ୟ, ଆକାଶ ରାଜ୍ୟ। (ପ୍ରସ୍ଥାନ)

## ଷଷ୍ଠ ଦୃଶ୍ୟ

*(ଭେରୀ ତୂରୀ ଶବ୍ଦ। ସିଂହରାଜା ସିଂହାସନରେ ବସିଲେ। ବାଘ ସେନାପତି ଓ ମନ୍ତ୍ରୀ ହାତୀ ପଛେ ପଛେ ଆସି ଠିଆ ହେଲେ।)*

ସିଂହ– ମହାମନ୍ତ୍ରୀ ! ଗୁପ୍ତଚର ଠାରୁ ସମ୍ବାଦ ମିଳିଛି– ରାଜ୍ୟରେ ଅଶାନ୍ତି ବଢ଼ିଯାଇଛି। ପ୍ରଜାକୂଳ ମଧ୍ୟରେ ଏକତା ନାହିଁ। କେତେକ ପଶୁ ରାଜଦ୍ରୋହ କାର୍ଯ୍ୟରେ ଲିପ୍ତ ଅଛନ୍ତି। ଏ'କଥା କ'ଣ ସତ୍ୟ ?

ହାତୀ– ସତ୍ୟ ମହାରାଜ।

ସିଂହ– ତେବେ ଏଥିପାଇଁ ପ୍ରତିକାର କ'ଣ କରିଛନ୍ତି ମହାମନ୍ତ୍ରୀ !

ବାଘ– ମହାରାଜ ! ଆପଣଙ୍କ ଠାରୁ ଆଦେଶ ପାଇଲେ, ଆମେ ରାଜଦ୍ରୋହୀ ପଶୁଙ୍କୁ ଦମନ କରିବାକୁ ଅଭିଯାନ ଆରମ୍ଭ କରିବୁ। ଏଥିପାଇଁ ମଣିମାଙ୍କର ଆଦେଶ ମିଳୁ ମହାରାଜ।

ସିଂହ– (ହାତୀ ପ୍ରତି) ମହାମନ୍ତ୍ରୀ ! ଆପଣ ତ ଜଣେ ବିଜ୍ଞ ତଥା ଚିନ୍ତାଶୀଳ ପଶୁ। ପ୍ରଜା ଅଶାନ୍ତିର ପ୍ରତିକାର ପାଇଁ ଆପଣ ସୁଚିନ୍ତିତ ମତାମତ ପ୍ରଦାନ କରନ୍ତୁ।

ହାତୀ– ମହାରାଜ ! ମୁଁ ଭାବୁଛି – ପ୍ରଜା ଅଶାନ୍ତିର ପ୍ରକୃତ କାରଣ ବୁଝାଯାଉ। ତା'ପରେ ଏହାର ପ୍ରତିକାର କଥା ଚିନ୍ତା କରାଯିବ।

ସିଂହ– ମହାମନ୍ତ୍ରୀ ! ମୋର ଆଦେଶ, ବର୍ତ୍ତମାନ ଆପଣ ପ୍ରଜା ଅଶାନ୍ତିର କାରଣ ଅନୁସନ୍ଧାନ କରନ୍ତୁ।

ହାତୀ– ତେବେ ମୋତେ ବିଦାୟ ଦିଅନ୍ତୁ ମହାରାଜ। (ପ୍ରସ୍ଥାନ)

ସିଂହ– (ବାଘପ୍ରତି) ସେନାପତି ମହାଶୟ ! ଆପଣ ବଣ ରାଜ୍ୟର ଚାରିପାଖ ପହରା ବ୍ୟବସ୍ଥା କରନ୍ତୁ। ଶତ୍ରୁମାନେ ଯେଉଁଭଳି ଆମ ରାଜ୍ୟରେ ପ୍ରବେଶ କରି ନପାରନ୍ତି, ସେଥିପାଇଁ କଡ଼ା ଦୃଷ୍ଟି ଦିଆଯାଉ।

ବାଘ– ଯଥା ଆଜ୍ଞା ମହାରାଜ। (ପ୍ରସ୍ଥାନ)

## ସପ୍ତମ ଦୃଶ୍ୟ

*(ମାଙ୍କଡ଼ ସହିତ ଅନ୍ୟ ପଶୁ ପକ୍ଷୀମାନେ ସ୍ଲୋଗାନ ଦେଇ ଚାଲିଥାନ୍ତି)*

ସ୍ଲୋଗାନ– ଆମର ରାଜା– ମାଙ୍କଡ଼ ରାଜା,
ଆମର ଲୋଡ଼ା– ଆକାଶ ରାଜ୍ୟ।



ହାତୀ– (ବିପରିତ ପଟୁ ପ୍ରବେଶ) ଭାଇମାନେ ଶାନ୍ତ ହୁଅ। ମୁଁ ରାଜାଙ୍କ ତରଫରୁ ଆସିଛି।

ମାଙ୍କଡ଼– (ସ୍ଲୋଗାନ ବନ୍ଦ କରିବାକୁ ନିର୍ଦ୍ଦେଶ ଦେଇ)
ଭାଇମାନେ ! ନୀରବ ହୁଅ।
ରାଜାଙ୍କ ତରଫରୁ ମହାମନ୍ତ୍ରୀ ହାତୀ ଆସିଛନ୍ତି। ସେ ଯଦି ଆମକୁ ଅଲଗା ରାଜ୍ୟ ଦେଇ ଦିଅନ୍ତି, ତେବେ ଆନ୍ଦୋଳନ କରିବା ଦରକାର ନାହିଁ।

ହାତୀ– ଧନ୍ୟବାଦ ମାଙ୍କଡ଼ ଭାଇ ! ଆମର ଏକତା ପାଇଁ, ଆଉ ତୁମର ପାଇଁ ଆଜି ଯାଏ; ଆମ ରାଜ୍ୟରେ ଶତ୍ରୁ କେହି ପଶି ପାରୁ ନଥିଲେ। ଆଜି ତୁମର କ'ଣ ହେଇଛି। ତୁମେ କ'ଣ ଚାହଁ, ମୋତେ କୁହ।

ମାଙ୍କଡ଼– ମହାମନ୍ତ୍ରୀ ! ଆପଣ ଜାଣନ୍ତି, ଆମେମାନେ ହେଲୁ ବୃକ୍ଷବାସୀ। ଆମମାନଙ୍କର ଦୁଃଖ ସୁଖରେ କେହି ଭାଗି ନାହାନ୍ତି। ସିଂହ ବଣର ରାଜା ହେଇଛନ୍ତି। ଆମକୁ ସେ ଅଲଗା ରାଜ୍ୟ ଛାଡ଼ି ଦିଅନ୍ତୁ। ଆମେ ଆକାଶ ରାଜ୍ୟ ଗଠନ କରି ସୁଖରେ ରହିବୁ।

ହାତୀ– ମାଙ୍କଡ଼ ଭାଇ! ଆମ ବଣ ରାଜ୍ୟ ଯଦି ଦୁଇଭାଗ ହୋଇଯାଏ, ତେବେ ଆମର ବଳ ବଢ଼ିବ ନା କମିବ? ଆପଣ ନିଶ୍ଚୟ କାହାର ତୋଷାମଦିଆ କଥାରେ ବିଶ୍ୱାସ କରିଛନ୍ତି। ମୁଁ ଜାଣେ, କପଟି କୁମ୍ଭୀର ଆମମାନଙ୍କର ସର୍ବନାଶ କରିବାକୁ ଏଭଳି ଚକ୍ରାନ୍ତ କରିଛି। ମୁଁ ଏ' ବିଷୟ ଗୁପ୍ତଚର ଠାରୁ ଜାଣି ସାରିଛି। ଆଚ୍ଛା, ମାଙ୍କଡ଼ ଭାଇ ! ସତ କହିଲ – ପାଣିରେ ରହୁଥିବା କୁମ୍ଭୀର କେବେ ଆମର କିଛି ଉପକାର କରିପାରିବ କି? ମନେ ପକାଅ– ତୁମ ବଂଶରେ ଥରେ ଜଣେ ମାଙ୍କଡ଼ ତା' ସହିତ ବନ୍ଧୁତା କରି କେମିତି ଶିକ୍ଷା ପାଇଥିଲା? ଶେଷରେ

କୁମ୍ଭୀର ପାଟିରେ ସେହି ମାଙ୍କଡ଼ର କଲିଜାଟା ପଡ଼ିଥାନ୍ତା। ତା' ଭାଗ୍ୟ ଭଲ– ନିଜ ବୁଦ୍ଧି ବଳରେ ସେ ବଞ୍ଚିଗଲା।

ମାଙ୍କଡ଼– ସେକଥା ମୁଁ ମୋ ଅଜାଙ୍କ ଠାରୁ ଶୁଣିଥିଲି ମହାମନ୍ତ୍ରୀ।

ହାତୀ– ତେବେ ପୁଣି ସେହିପରି ଭୁଲ କରି, ପୁଣି ଥରେ ନିଜ ରାଜ୍ୟର ସର୍ବନାଶ କରିବାକୁ କେମିତି ଆଗେଇ ଆସିଛ?

ମାଙ୍କଡ଼– (ଗୋଡ଼ ଧରି ପକାଇ) ମୋତେ କ୍ଷମା କରନ୍ତୁ ମହାମନ୍ତ୍ରୀ। ମୁଁ ମୋର ଭୁଲ ବୁଝି ପାରିଛି। ସେହି ସିଂହରାଜା ହିଁ ଆମର ଏକମାତ୍ର ଶାସକ ରହିବେ। (ପଶୁଙ୍କ ପ୍ରତି) ଚାଲ ଭାଇମାନେ ଫେରି ଚାଲ। ଆମର ଅଲଗା ଆକାଶ ରାଜ୍ୟ ଦରକାର ନାହିଁ। ସିଂହ ମହାରାଜା ହିଁ ଆମର ରାଜା। (ପ୍ରସ୍ଥାନ)



## ଅଷ୍ଟମ ଦୃଶ୍ୟ

*(ବିଲୁଆ ନେତୃତ୍ୱରେ ପଶୁମାନେ ସ୍ଲୋଗାନ ଦେଇ ମାଡ଼ି ଆସୁଥିବେ। ସିଂହାସନରେ ସିଂହରାଜା ବସିଥିବେ, ଉଠି ପଡ଼ିବେ। ମନ୍ତ୍ରୀ ସେନାପତି ଉପସ୍ଥିତ ଥିବେ)*

ସିଂହ– (ଉଚ୍ଚ ସ୍ୱରରେ) ପଶୁ ପକ୍ଷୀ ଭାଇମାନେ, ଶାନ୍ତ ହୁଅ। ସମସ୍ତଙ୍କର ଅସୁବିଧା କଥା ମୁଁ ନିଶ୍ଚୟ ଶୁଣିବି।

ବିଲୁଆ– ଆମେ କିଛି ଶୁଣିବୁ ନାହିଁ। ଆଗ ଆମକୁ ରାଜ୍ୟର ଅଧେ ଛାଡ଼ି ଦିଅ।

ଗଧିଆ– ହଁ, ହଁ, ବିଲୁଆ ଆମର ରାଜା ହେବେ। ଆମେ ଆଉ କିଛି ଶୁଣିବୁ ନାହିଁ।

ବାଘ– ମହାରାଜ ! ଏମାନେ କାହାର ବୁଦ୍ଧିରେ ପଡ଼ିଛନ୍ତି। ପର ବୁଦ୍ଧିରେ ନିଜର ସର୍ବନାଶ କରିବାକୁ ଏମାନେ ଆଗେଇ ଆସିଛନ୍ତି। ଏହି ଅବାଧ ପଶୁମାନଙ୍କୁ ଶାସନ କରିବା ପାଇଁ ମୋତେ ଆଦେଶ ଦିଅନ୍ତୁ। (ଖଣ୍ଡା ବାହାର କରିବ)

ସିଂହ– ନା, ନା, ତାହା ମୁଁ କେବେ କରାଇ ଦେବି ନାହିଁ। ମୋ ବଣ ରାଜ୍ୟରେ ଧର୍ମର ଶାସନ ଚାଲୁଛି। ଏଠି ହିଂସା କାଣ୍ଡର ସ୍ଥାନ ନାହିଁ। (ମନ୍ତ୍ରୀଙ୍କ ପ୍ରତି) ମହାମନ୍ତ୍ରୀ ଏଥିପାଇଁ ପରାମର୍ଶ ଦିଅନ୍ତୁ।

ହାତୀ– ମହାରାଜ ! ପ୍ରଜାଙ୍କ ସୁଖ ପାଇଁ ଆମକୁ ତ କିଛି ତ୍ୟାଗ କରିବାକୁ ପଡ଼ିବ। ହେଇ ଦେଖନ୍ତୁ–ବଣର ସେପାଖରେ କିଏ ନିଆଁ ଲଗାଇ ଦେଇଛି। ଛୋଟ ଛୋଟ ନୀରିହ ପଶୁପକ୍ଷୀ କିପରି ପ୍ରାଣ ବିକଳରେ ବଣ ଛାଡ଼ି ଚାଲି ଯାଉଛନ୍ତି। ଏପାଖରେ ହିଂସା କାଣ୍ଡ ଲାଗି ଯାଇଛି। ତେଣୁ ବିଲୁଆକୁ ଅଧେ ରାଜ୍ୟ ଛାଡ଼ି ଦିଅନ୍ତୁ। ସେମାନେ ଆଗ ଶାନ୍ତ ହୋଇ ଯାଆନ୍ତୁ। ପରେ ଅନ୍ୟ କଥା।

ସିଂହ– ଠିକ୍ କହିଛନ୍ତି ମହାମନ୍ତ୍ରୀ, ପ୍ରଜାଙ୍କ ସୁଖ ପାଇଁ ମୁଁ ସେଇଥିରେ ରାଜି। ତାହା ହିଁ ହେଉ।

ବାଘ– ମହାରାଜ ! ଆପଣ ଇଏ କି' ଆଦେଶ ଦେଲେ। ବିଲୁଆଟା ଏକ ଧୂର୍ତ୍ତ ଜୀବ। ସେ ଏଇ ସୁନାର ବଣରାଜ୍ୟର ସର୍ବନାଶ କରିବ ମହାରାଜ।

ସିଂହ– ମୁଁ ନିରୁପାୟ ସେନାପତି। (ମୁଣ୍ଡ ତଳକୁ କଲେ)

## ନବମ ଦୃଶ୍ୟ

*(ଭେରୀ ତୁରୀ ଶବ୍ଦ ସିଂହାସନ ପାଖରେ ଗଧିଆ ଠିଆ ହୋଇଥିବ)*

ଗଧିଆ– ସାବଧାନ ! ବଣ ରାଜ୍ୟର ପଶୁ ପକ୍ଷୀ ଭାଇମାନେ! ଆମର ନୂଆ ରାଜା–କେତକୀ ମୂଳବାସୀ, ମହା ମହିମ, ଚତୁର ଶ୍ରେଷ୍ଠ, କର୍କଟ ବିଧ୍ୱଂସି, ଗର୍ତ୍ତେଶ୍ୱର, ମହାରାଜା ବିଲୁଆ ବିଜେ...... (ଭେରୀ ତୁରୀ ଶବ୍ଦ)

ବିଲୁଆ– (ସିଂହାସନରେ ବସି) କୁହ ମହାମନ୍ତ୍ରୀ ଗଧିଆ, ରାଜ୍ୟରେ ସବୁ କୁଶଳ ତ ?

ଗଧିଆ– ମହାରାଜ! ଆପଣଙ୍କ ବୁଦ୍ଧିର ତୁଳନା ନାହିଁ। ଆପଣଙ୍କ ବୁଦ୍ଧି ବଳରେ ଆମେ ଜୟ ଲାଭ କରିଛୁ। ପ୍ରଜାମାନେ ଭାରି ଖୁସିରେ ଅଛନ୍ତି ମହାରାଜ।

କୁଟୁରା– (ପ୍ରବେଶି) ମହାରାଜ! ମହାରାଜ! ସର୍ବନାଶ ହେଇଛି।

ବିଲୁଆ– କିରେ କୁଟୁରା, କ'ଣ ହେଇଛି କିରେ ?

କୁଟୁରା– ମହାରାଜ! ଆପଣଙ୍କ ଆଦେଶରେ ଆମେ ବଣରେ ନିଆଁ ଲଗାଇ ଦେଇଥିଲୁ। ସେଇ ନିଆଁ ସାରା ବଣକୁ ମାଡ଼ି ଗଲାଣି। ଆଉ ରକ୍ଷା ନାହିଁ ମହାରାଜ। ଶୀଘ୍ର ଏ ସ୍ଥାନ ଛାଡ଼ି ପଳାଇ ଚାଲନ୍ତୁ।

ବିଲୁଆ– କିଛି ଚିନ୍ତା ନାହିଁ। କୁମ୍ଭୀର ରାଜା ଆମକୁ ପାଣି ଯୋଗାଇ ଦେବେ। ସିଏ ପରା ଜଳ ରାଜ୍ୟର ରାଜା, ଆମର ବନ୍ଧୁ ରାଜା।

ଗଧିଆ– ମହାରାଜ! ନଦୀ ତ ବହୁତ ଦୂର। ସେଇଠୁ ପାଣି ଆଣିବ କିଏ ?

ବିଲୁଆ– କାହିଁକି ହାତୀକୁ ଡାକୁନା, ସେ ପାଣି ଆଣି ନିଆଁ ଲିଭାଇବ।

କୁଟୁରା– ହାତୀ ମହାମନ୍ତ୍ରୀ ତ ସିଂହ ରାଜାଙ୍କ ପାଖରେ ଅଛନ୍ତି, ସେ ତାଙ୍କର ଶୁଣ୍ଢରେ ପାଣି ଆଣି ତାଙ୍କ ରାଜ୍ୟକୁ ଶୀତଳ କରୁଛନ୍ତି।

ଗଧିଆ– ଆରେ ସତେ ତ, କ'ଣ କରିବା ମହାରାଜ ?

ବିଲୁଆ– ତେବେ ଶୀଘ୍ର ଯାଅ ମହାମନ୍ତ୍ରୀ, କୁମ୍ଭୀର ରାଜାଙ୍କୁ ସାହାଯ୍ୟ ପ୍ରାର୍ଥନା କର।

ଗଧିଆ– ଏଇ ତ ଚାଲିଲି ମହାରାଜ ! (ଦୁହେଁ ପ୍ରସ୍ଥାନ)

ବିଲୁଆ– (ମନ ଅସ୍ଥିର)

କୁଟୁରା– (ପ୍ରବେଶି) ମହାରାଜ, ପୁଣି ସର୍ବନାଶ।

ବିଲୁଆ– ପୁଣି କ'ଣ ହେଲା ଦୂତ ?

କୁଟୁରା– ମହାରାଜ ! ମହାରାଜ ! (କାନ୍ଦ କାନ୍ଦ ହୋଇ)

ବିଲୁଆ– କ'ଣ ହେଲା କୁହ।

କୁଟୁରା– ମହାମନ୍ତ୍ରୀ ଆଉ ଜୀବନରେ ନାହାନ୍ତି।

ବିଲୁଆ– ତେବେ ତାଙ୍କୁ ସିଂହରାଜା ମାରିଛି ତ?

କୁଟୁରା– ନା, ମହାରାଜ, ଗଧିଆ ମହାମନ୍ତ୍ରୀ ଜଳରେ ପଶିବା ମାତ୍ରେ କୁମ୍ଭୀର ରାଜା ଟାଙ୍କୁ ଟାକ୍ କରି ଧରି ନେଇଗଲେ–ନଈ ଭିତରକୁ ।



ବିଲୁଆ– ତା'ପରେ ........

କୁଟୁରା– ତା'ପରେ ଛଟପଟ ହୋଇ ମହାମନ୍ତ୍ରୀ କୁମ୍ଭୀର ରାଜାଙ୍କ ପାଟି ଭିତରକୁ ଚାଲିଗଲେ ମହାରାଜ । (କାନ୍ଦିବା)

ବିଲୁଆ– କି' ଦାରୁଣ ସମ୍ବାଦ ଦେଲୁ ଦୂତ ! ମୁଁ ଏହାର ପ୍ରତିଶୋଧ ନେବି । କୁମ୍ଭୀରକୁ ହତ୍ୟା କରିବି । (ଗର୍ଜ୍ଜନ)

ଠେକୁଆ– (ପ୍ରବେଶି) ମହାରାଜ, ଦୁଃସମ୍ବାଦ ।

ବିଲୁଆ– କ'ଣ ହେଲା ଠେକୁଆ, ତୁ ପୁଣି କି ଖବର ଆଣିଛୁ ?

ଠେକୁଆ– ମହାରାଜ ! କିଆବୁଦାରେ ନିଆଁ ଲାଗିଛି । ଗାତ ମୁହଁରେ ଆପଣଙ୍କ ଛୁଆ ଦରପୋଡ଼ା ହୋଇ ପଡ଼ିଛନ୍ତି । ପ୍ରାଣ ବିକଳରେ ଅନ୍ୟ ପଶୁମାନେ ଯିଏ ଯୁଆଡ଼େ ଧାଇଁ ପଳାଇ ଗଲେଣି । ନିଆଁ ଖୁବ୍ ଜୋରରେ ଏ' ଆଡକୁ ମାଡ଼ି ଆସୁଛି । ମୁଁ ଚାଲିଲି ମହାରାଜ, ମୁଁ ଚାଲିଲି । (ପ୍ରସ୍ଥାନ)

ବିଲୁଆ– ଓଃ! ଏ' କ'ଣ ସବୁ ହୋଇଗଲା ? କପଟି କୁମ୍ଭୀର ମୋର ମନ୍ତ୍ରୀକୁ ମାରି ଖାଇଲା । ପ୍ରଜାମାନେ ରାଜ୍ୟଛାଡ଼ି ଚାଲି ଗଲେଣି । ମୋର ଘରଦ୍ୱାର ସବୁ ପୋଡ଼ିଗଲା । ଛୁଆମାନେ ପୋଡ଼ିଗଲେ । କଣ କରିବି? ମୋତେ କିଏ ସାହାଯ୍ୟ କରିବ? ଓଃ!– ହେଇ ତ ନିଆଁ ମାଡ଼ି ଆସୁଛି । ମୋର ଆଉ ରାଜା ହେବା ଦରକାର ନାହିଁ । ଯାଉଛି, ସେଇ ସିଂହ ମହାରାଜାଙ୍କର ଶରଣ ପଶିବି । (ପ୍ରସ୍ଥାନ)

## ଶେଷ ଦୃଶ୍ୟ

(ସିଂହାସନରେ ସିଂହରାଜା । ନିକଟରେ ହାତୀ ମନ୍ତ୍ରୀ ଉପସ୍ଥିତ)

ବିଲୁଆ– (ଦୂରରୁ) ମହାରାଜ! ମୋତେ ରକ୍ଷା କରନ୍ତୁ । (ପ୍ରବେଶ) କ୍ଷମା ଦିଅନ୍ତୁ । ମୁଁ ବହୁତ ବଡ଼ ଅପରାଧ କରିଛି । କପଟି କୁମ୍ଭୀର କଥାରେ ପଡ଼ି ମୁଁ ଏ' ବଣ ରାଜ୍ୟର ସର୍ବନାଶ କରିଛି । ମୋତେ କ୍ଷମା କରନ୍ତୁ ମହାରାଜ । ଆପଣଙ୍କର ଶରଣ ପଶୁଛି । ମୋ ଜୀବନ ରକ୍ଷା କରନ୍ତୁ ।

ସିଂହ– ସମସ୍ତଙ୍କର ଧାରଣା ଥିଲା– ବିଲୁଆ ବଡ଼ ଚତୁର । ଆଜି ତୁମେ ଯେଉଁ ଦେଶଦ୍ରୋହୀ କାମ କରିଛ, ସେଥିପାଇଁ ପଶୁ ସମାଜ ତୁମକୁ କେବେ କ୍ଷମା ଦେଇ ପାରିବ ନାହିଁ । ଶତ୍ରୁର ଟେକାଟେକି କଥାରେ ତମେ ନିଜ ରାଜ୍ୟର ବହୁତ କ୍ଷତି କରିଛ । ତୁମର ଅନୁତାପ କରିବା ଛଡ଼ା ଆଉ କିଛି ନାହିଁ ।



ବିଲୁଆ– ମୋତେ କ୍ଷମା କରନ୍ତୁ ମହାରାଜ! ମୁଁ ମୋର କଲାକର୍ମର ଫଳ ପାଇ ସାରିଲିଣି। ମୁଁ ଶପଥ କରୁଛି, ଏ' ଜୀବନରେ ଏମିତି ଭୁଲ କାମ କେବେ କରିବି ନାହିଁ।

ହାତୀ– ମହାରାଜ! ବିଲୁଆ ନିଜର ଭୁଲତ ବୁଝି ପାରିଛି। ତାକୁ କ୍ଷମା କରି ଦିଅନ୍ତୁ। ଯେତେହେଲେ ବି ସେ ତ ଆମର ପଶୁ ଭାଇ। କ୍ଷମାଦାନ ଠାରୁ ବଡ଼ ଦାନ ନାହିଁ ମହାରାଜ। ମୁଁ ଯାଉଛି, ଶୁଣ୍ଢରେ ପାଣି ଆଣି ସବୁ ନିଆଁକୁ ଲିଭାଇ ଦେବି। ଆଗ ଆମ ବଣ ରାଜ୍ୟକୁ ରକ୍ଷା କରିବାକୁ ପଡ଼ିବ। ମୁଁ ତେବେ ଚାଲିଲି। (ପେଁ– ଶବ୍ଦ କରି ପ୍ରସ୍ଥାନ)

ସିଂହ– ଧନ୍ୟ ମହାମନ୍ତ୍ରୀ ! ଧନ୍ୟ ତୁମର ବୁଦ୍ଧି ! ଆସ ବିଲୁଆ– ଆମେ ସମସ୍ତେ ମିଶି ପୁଣି ଏକତା ବଳରେ ଆମ ବଣରାଜ୍ୟକୁ ସରସ ସୁନ୍ଦର କରି ଗଢ଼ି ତୋଳିବା। ପର କଥାରେ କେବେ ଭୁଲିବା ନାହିଁ।

ବିଲୁଆ– ତେବେ ସମସ୍ତେ କୁହନ୍ତୁ–ଜୟ ସିଂହ ମହାରାଜାଙ୍କର ଜୟ

ସମସ୍ତେ– ଜୟ (ସମାପ୍ତ)



# ଡକ୍ଟର କୃତ୍ତିବାସ ନାୟକ

ଗ୍ରାମ : ଏକତଲା, ପୋ : ରାଜକନିକା
ଜିଲା - କେନ୍ଦ୍ରାପଡ଼ା

ଡକ୍ଟର ନାୟକ ଆକାଶବାଣୀର ଜଣେ ବରିଷ୍ଠ ଅଧିକାରୀ ଭାବେ କାର୍ଯ୍ୟରତ । ସାହିତ୍ୟର ବିଭିନ୍ନ ବିଭାବରେ କଲମ ଚାଳନା କରି ସେ ସଫଳତା ହାସଲ କରିଛନ୍ତି । ସେ ଜାତୀୟ ଶିଶୁ ସାହିତ୍ୟ (୧୯୯୨-୯୩) ସମେତ ଅନେକ ରାଜ୍ୟସ୍ତରୀୟ ପୁରସ୍କାର ଓ ସମ୍ମାନ ଲାଭ କରିଛନ୍ତି । ତାଙ୍କର ୬୨ ଖଣ୍ଡ ପୁସ୍ତକ ପ୍ରକାଶିତ ହୋଇ ଯଥେଷ୍ଟ ଲୋକପ୍ରିୟତା ହାସଲ କରିଛି ।



ISBN 81-901015-09